# ନାଗଲ ଚତୁର୍ଥୀ
# ବ୍ରତ କଥା

[ ନୂତନ ମୁଦ୍ରଣ ]

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର
ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ
ଅଲିଶାବଜାର, କଟକ-୨
ଫୋନ୍ ନଂ-୨୪୭୯୬

ସାବଧାନ !
ମୂଲ୍ୟ ଉପରେ ଷ୍ଟାମ୍ପ ବା ଚିଟ୍ ଲଗାଇବେ ନାହିଁ ।

ମୂଲ୍ୟ—ଏକଟଙ୍କା ପଚିଶ ପଇସା ମାତ୍ର

# ନାଗଲ ଚତୁର୍ଥୀ ବ୍ରତ କଥା

—:-*-:—

( ମୁନିବର ବାଣୀ )

ଜୟ ଜୟ ଗଣରାଜ, ଲମ୍ବୋଦର ଚତୁର୍ଭୁଜ, ଜୟ ହେ ଶ୍ରୀନାଗଭୂଷଣ, ରମା ରମଣ ହେ । ଜୟ ଚଣ୍ଡିକା ଭବାଣୀ, ଜୟ ତକ୍ଷକ ନାଗୁଣୀ, ପଦ୍ମ ଚରଣେ ଶୁମ୍ଭର, ମୋ ନମସ୍କାର ହେ । କୋଶଳ ନାମ ଦ୍ୱୀପରେ; ଭୂମି ଭାରତ ମଣ୍ଡଳେ, ଅବନ୍ତୀ ନାମେ ନଗର, ତହିଁରେ ଘର ଯେ ବଣିକ ସାଧବ ନାମ, ଧନରେ କେ ନୋହେ ସମ, ଧନେଇ ତା ସାଧବାଣୀ, ତାର ଘରଣୀ ହେ । ସାତପୁଅ ତାର ସାତ ବୋହୂରେ ସେ ଭାଗ୍ୟବନ୍ତ, ଦୂଷନ୍ତେ ସାନବୋହୂକୁ, ଶାଶୁ ତାହାଙ୍କୁ ଯେ । କ୍ଷଣେ ଦେଖି ନ ପାରନ୍ତି, ଅଗ୍ନିଯୋଗ କରନ୍ତି, ସବୁ ଲିପି ହାଣ୍ଡି ଧୋଇ; ଛେଚ ପକାଇ ଯେ କଂସା ଥାଳି ଗରା ମାଜି, ଅଗଣାରେ ଦିଏ ସାଜି, ଏରୂପେ ଦେଖି ବୁଢ଼ି, ଗାଧୋଇଯାଇ ଯେ । ପାଇଲେ ଯେ କିଛି ଖାଇ, ନୋହିଲେ ଉପାସେ ଶୋଇ, ଏ ରୂପେ ଦିନ ବଞ୍ଚଇ, ଦୁଃଖରେ ଥାଇ ଯେ ଏକଦିନେ ଶାଶୁ ପୁଣି, ବୋହୂଙ୍କୁ ସଙ୍ଗରେ ନେଇ, ନଈକି ଗାଧୋଇ ଗଲେ, ମାଛ ଧରିଲେ ଯେ । ସାତଟି ଗଡ଼ିଶା ପାଇ, ସାନବୋହୂକୁ ତା ଦେଲେ, କହିଲେ ଏ ମାଛ ରାନ୍ଧି ଦେବୁଟି ଆଜି ଯେ ଘରକୁ ଆଇଲେ ପୁଣି, ସାନବୋହୂ ମାଛ ଆଣି, ଚୂଲିରେ ଖୋସିଣ ଦେଲା, ମନେ ହୋଇଲା ଯେ । ଶାଶୁ କଥା ମନେ ନାହିଁ, ଭାଣ୍ଡ ଦେବ ଅବା କାହିଁ, ଏ ରୂପେ କେତେକ ଦିନେ ଶାଶୁର ମନେ ଯେ ପଡ଼ିଲା ଯହୁଁ ସେ ପୁଣ, କହିଲା ବୋହୂକୁ ଶୁଣ, ସବୁ ମାଛକୁ ଖାଇଲୁ, ମୋତେ ନ ଦେଲୁ ଯେ । ଡାଆଣୀ ଡାକୁଣୀ ଝିଅ, ଏ ବୁଦ୍ଧି କାହିଁରେ ଥୁଅ, ନ ଦେଲୁ କହିଲୁ ନାହିଁ ତସ୍କରୁ ଭାଳି ଯେ । ଏତେ ଭରସା ତୋହର, ମୋତେହେଁ ନୋହିଲା ଡର, ଆଉ କି ମୁଁ ତୋତେ ଦେବି, କସ କହିବ ଯେ । ଶାଶୁର

ଶୁଣି ଉତ୍ତର ବୋହୂ ଚଳଇ ମନତ, ସ୍ବକରୁ ମାଛ ଆଣିଲ ଅଟରେ, ବେଳ ଯେ । ବୋଲେ ସବୁ ଦେଖ ଏଥି, ଗୃଡ଼ା ଏ ବୋଲଣ ଏଥି, ମାଛକୁ ଖାଉଛୁ କାହିଁ, ମନେ ମୋ ନାହିଁ ଯେ ସ୍ବନରେ ଖୋସିଲ ଯହିଁ, ମନେ ନ ପଡ଼ିଲ ତହିଁ, ଶାଶୁ ପୁଣି ମା * ସଡ଼, ଦେଲକ ପେଢ଼ ହେ । ଦେଖିଲ ସାଳ୍ପଟି ନାଗ, ପଳାଇଲେ ଡଗ ଡଗ, ତାର ଯେ ଈଶାନ୍ୟ କୋଣେ ରହିଲେ ପଶି ଯେ । ଶାଶୁ ଯେ ତାହା ଦେଖିଲ, ତାଟକା ହୋଇ ରହିଲ ଏମନ୍ତ ଏ କଥା ଶୁଣି, ଯା ହେଲ ପୁଣ ଯେ । ସାନବୋହୂ ତା ଜାଣିଲ ଈଶାନ୍ୟ କୋଣକୁ ଗଲ, ସେ ନାଗ ପିଲଙ୍କୁ ଦେଖି, ଯତନେ ରଖି ଯେ । ତିଆଣ ରାନ୍ଧିଲବେଳେ ମିଶାଇ ଦୁଧଗୁଡ଼ରେ, ଖାଇବାକୁ ଦେଲ ଯହୁଁ ବଢ଼ିଲେ ତହୁଁ ଯେ । ବଡ଼ଲ ପାଇଣ ତାଙ୍କୁ, ନ କହୁ କହୁ କାହାକୁ ଦୁଙ୍କରେ ନେଇ ଛାଡ଼ିଲ ଆନନ୍ଦ ହେଲ ଯେ । ତହୁଁ ସାତ ନାଗ ଗଲେ, ପାତାଳ ପୁରେ ପଶିଲେ, ନାଗୁଣୀ ମା'କୁ ଯାଇ କହିଲେ ତହିଁ ଯେ । ଆମ୍ଭେ ଯେ ମଞ୍ଚକୁ ଗଲୁ, ମାଛ ରୂପେ ଖେଳୁଥିଲୁ ଆମ୍ଭଙ୍କୁ ଯେ ସାଧବାଣୀ ଧଇଲ ପୁଣି ଯେ । ସାନବୋହୂ ହାତେ ଗଲ, ବେକୁଟି ବୋଇଲ ଆଉ, ସ୍ବନରେ ଖୋସିଲ ଶୁଣି ତ ବୋହୂ ପୁଣି ଯେ । ମନେ ତା' ନୋହିଲ ଯହୁଁ, ଶାଶୂ ଗାଳଦେଲ ତହୁଁ, ବୋଇଲ ମାଛ ଖାଇଲୁ ମୋତେ ନ ଦେଲୁ ଯେ । ତା ବୋହୂ ନଚେତଇ ପୁଣି, ମାଛ ଦେଲ ତତକ୍ଷଣି, ଶାଶୂ ଖାଇବାକୁ ପୋଡ଼ି, ପେଢ଼ଲ ପୂଢ଼ ଯେ ତହୁଁ ଆମ୍ଭେ ବେଗେ ଚଳୁ, ତାର ଈଶାନ୍ୟ ଲୁଚିଲ, ଖୋଜିଲେ ପାଇବ କାହୁଁ ଲୁଚିଲୁ ତହୁଁ ଯେ । ସାନବୋହୂ ତାହା ଜାଣି, ଲୁଚିଲୁ ଯହିଁରେ ପୁଣି, ଦୁଧ ଗୁଡ଼ଜ ଲବଣ, ଦଅଇ ପୁଣି ଯେ । ଗଲ ପ୍ରାପ୍ତେ କର ପାଳ, ପୋଷିଲ ଆମ୍ଭଙ୍କୁ ବାଳୀ, ଅତ ବଡ଼ଲ ହୋଇଲ, ଛାଡ଼ଣ ଦେଲ ଯେ । ଦୁଙ୍କାରେ ଆମ୍ଭଙ୍କୁ ଥୋଇ, ବୋଇଲ ଯାଅରେ ଗଲ, ଶାଶୂ ମୋ ପୋଡ଼ ମାରନ୍ତା,

* ସଡ଼—ମଡ଼ଆ ସଢ଼େଇ

ପ୍ରାଣ ନ ଥାନ୍ତା ଯେ । ଏମନ୍ତେ ସେ କେତେଦିନ, ଗଲ ହେ ଶୁଣ ସୁଜନ, ନାଗ ନାଗୁଣୀ ଙ୍କୁ ଝିଲେ, ସନ୍ତୋଷ ହେଲେ ଯେ । ଏମନ୍ତ ସେ ସାତ ଭାଇ, ମାତାଙ୍କୁ ବନ୍ଦି ହୋଇ, ବୋଇଲେ ଶୁଣଗୋ ମାତ କହିବୁ ସତ ଗୋ । ସାଧବ ବୋହୂ, ଅମ୍ଭର, ଭଉଣୀ ଟିଏ ତୁମ୍ଭର, ଆଣିବୁ ପାତାଳପୁର, କହ ଉତ୍ତର ଯେ । ଶାଶୂରେ ସେ ସ୍ୱାନମାନ, ଆସିବା ତାହାଙ୍କୁ ଘେନ, ଦନାକେତେ ପାତାଳରେ, ରହନ୍ତା ଘରେ ଯେ । ଦେଖାଇ ଅମ୍ଭର ପୁର, ସ୍ତୁତିନ୍ତେଣ ତାଙ୍କ ଘର, ଧନ ଅଳଙ୍କାର ଦେଇ, ତୋଷକରଇ ଯେ । ବୋଇଲ ନାଗୁଣୀ ମାତ ଆଣି ଯାଅଭାଇ ସାତ, ସଙ୍ଗୋଳ ଘେନ ଆସିବ ତତ୍କାଳୋଦ୍ଧବ ଯେ । ଶୁଣିଣ ସେ ସାତଭାଇ, ଘୋଡ଼ାକୁ ସଜ କରାଇ, ଭାଇମାନେ ବାହୋଡ଼ାକୁ ଘେନ ମଣ୍ଡଳୁ ଯେ । ମିଳିଲେ ସାଧବପୁର, ବଜାଇ ବାଜା ମଦ୍ଦୁର, ଘୋଡ଼ାରେ ସେ ସାତ ଭାଇ, ବସି ଚଳାଇ ଯେ ସାଧବ ଆଗରେ ଲୋକେ, କହିଲେ ଯାଇଣ ଥୋକେ ବୋଇଲେ କେ ଆସେ ବୁଝ, ହୋଇଣ ସଜ ଯେ । ଶୁଣି ଯେ ପୁଅକୁ ଗଲ, ବେଗେ ଦେଲ ପଠାଇ, ବୋଇଲ କେ ଆସେ ପୁଣ ପଶ୍ଚାତେ ଆଣ ଯେ ଶୁଣି ପୁଅମାନେ ଗଲେ, ଲୋକଙ୍କୁ ଯାଇ ପୁଚ୍ଛିଲେ, କେ ବୋଇଲେ ତୁମ୍ଭ ଶଳା, କର ସଙ୍ଗୋଳା ଯେ ପୁଣି ସେ ପୁଅଙ୍କୁ ସାଇ, ବେଗେ ଦେଲେ ପଠାଇ, ସାନ ବୋହୂଙ୍କର ଭାଇ, ଦେଖିବା ପାଇଁ ଯେ ହେଉଅଛୁ ନରରୂପୀ, ତ ଙ୍କର ଶଳା ସ୍ୱରୂପୀ, ଘରରେ ପ୍ରବେଶ ହେଲେ, ପାଦ ଧୋଇଲେ ଯେ । ଦେଖି ସାଧବ ଉଲ୍ଲାସ, ରନ୍ଧିଲ ସାମଗ୍ରୀଯାକ, ଘେନ ଭୁଞ୍ଜି ତୃପ୍ତ ହେଲେ, ସଙ୍ଗୋଳାଇଲେ । ଶଳାମାନଙ୍କର ଘର, ଥିବାରୁ ବହୁତ ଦୂର, ରଖିଲେ ନିଜ ସଦନ, କେତେକଦିନ ଯେ ଦନାକେତେ ସୁପ୍ରବନ୍ଧ, ବହୁତ ସମ୍ମାନପାଇ, ଶାଶୂ ଶ୍ୱଶୁରଙ୍କ ଆଗେ କହିଲେ ବେଗେ ଯେ । ବହୁକାଳୁ ଦେଖିନାହୁଁ ରହି ପାରିବେ ବା କାହୁଁ, ମାତାଙ୍କ

ବୋଲେ ଆଇଲୁ; ଦେଖା ହୋଇଲୁ ଯେ । ଭଉଣୀଙ୍କୁ ଥରେ ଦେଖୁ
ଦମାସ ରଖି ଆଣିବୁ, ଦେଖା ଶୁଦ୍ଧାଁ ହୋଇକରି ଆସିବ ଯେପରିତେ
ଶୁଣି ସେ ବୋଇଲେ ନେନ, ବେଗେ ଆଣି ଗୃହ୍ଣ ନେବ; ବହୁତ
ଦୂରକୁ ଯିବ, ଜେତ ହୋହିବେ ଯେ । ସାନବୋହୂ ତାହା ଶୁଣି;
ଆନନ୍ଦ ହୋଇଲ ପୁଣି, ଓଳଗି ମେଲାଣି ଅଗେ, ବାହାର ବେଗେ
ଯେ । ହାଦୋଳା ଉପରେ ଯାଇ ବସିଲୁକ ସ୍ୱନମୂର୍ତ୍ତି, ଭରଏ ଯଙ୍ଗା
ବେଷ୍ଟରେ, ନେଙ୍ଗା ସଜଡ଼େ ଯେ । ଯଇଲେ ପାତାଳପୁଖି ମାତ ଙ୍କୁ
ଓଳଗି କରି, ପୃଷ୍ଠ ଟିଶ୍ରକୁ କଲ୍ୟାଣ କଲେ ଯେ ପୁଣ ସେ । ନାଗ
ଆଦ ନାଗ ମାତ, ବେଷ୍ଟି ହୋଇଲେ ଜ୍ୟେତ, ସାଧବ ବୋହୂ
ଝସ୍ତରେ, କେବଣ ପଟରେ ଯେ । ଏମନ୍ତେ ସେ ସାନବୋହୂ, ନାଗମାତା
ଆଦ ହୋଇ, ସବୁ ମଣାଇ କହିଲେ, ବିଶ୍ୱାସ ହେଲେ ଯେ ଧର୍ମର
ଦୁହିତା ମୋର ଭଉଣୀ ଏ ସାତଙ୍କର; ଅଣିଲୁ, ଏ ନାଗପୁର ଭୟ
ନ କର ଯେ । ପ୍ରାଣ ରକ୍ଷି ଯୋଡ଼ି ସ୍ୱାଙ୍କୁ ଗୃହଂଯେ ଦେଲୁ ଏଠାକୁ
ଏ ଯେଉଁଠିବୁ ଆସିବୁ ଯେ ଇଚ୍ଛା ନେବୁ ଯେ । ଅଜା ଅଜଗରବୁଢ଼ା
ମାଟିବୁ ଯେ ଛେକ ଲେଡ଼ା; ନ କହିବୁ କାହା ଆଗେ କଥା ପ୍ରସଙ୍ଗେ
ଯେ । ବଚନେ ଯେ ତାକ ଟିଶ୍ରକୁ ଦେଖାଏ ସବୁ ଘରକୁ; ଏକଘରକୁ
ଝୁଣ୍ଟିଲ, ପୁଣି ବୋଇଲ ଯେ । ଏ ଘରକୁ ଟିଶ ଦେଖ ଭ୍ରମେ ନ
ଯିବୁଟି ପାଖ, ଅଛି ମନା ଦେଖିବାକୁ, ମୋ ଲେକଙ୍କୁ ଯେ । କେତେ
ଦନ ଅନ୍ତେ ବାଳୀ, ମନେ ହୋଇ କୁତୁହଳ, ସେ ଘର ଗୋଟିକୁ
ଫେଇ, ଖେଳକ ଝୁଣ୍ଟି ଯେ । ଝୁଣ୍ଟିବା ଦେଖଂଣ ନାଗେ, ଗଜଣ
ଉଠିଲେ ବେଗେ, ଫଣାମାନ ଜଳେ ଟେକି, ଝୁଣ୍ଟିଲେ ଟାକ ଯେ ।
ସାଧବବୋହୂ ଦେଖିଣ; କବାଟକିଲିଲ ପୁଣି; ବୋଲେଇ ଏ ଘରକଥା
ନୁହେ ଅନ୍ୟଥା ଯେ । ମନଦୁଃଖେ ଭଣ୍ଡ ବସି; ନାଗ ନାଗୁଣୀ ଯେ ଆସି
ବୋଇଲେ ଦମନ ତୋର; କହ ଆଗର ଯେ । ସାଧବ ବୋହୂ ଯେ
ବନ୍ଧ; ମନା କଲ ଘରମୁଣ୍ଡି; କବାଟ ଫେଇ ଝୁଣ୍ଟିଲ ସତ କ ବୋଲି

ଯେ । ଦେଖି ସର୍ପମାନେ ମୋତେ ଗର୍ଜ୍ଜିଣ ଉଠିଲେ କେତେ
କ୍ରୋଧରେ ଧାଇଁଲେ ଯହୁଁ, ପଳାଇ ତହୁଁ ଯେ । କବାଟ ଫେଇ
କଳଲି, ଭୟରେ ଏଥି ବସିଲି, କେବଣ କଥା ଏ ମାତ, କହ ଗୋ
ସତ ଯେ ॥ ଏରୂପେ ସେ ନାଗଚର୍ତ୍ତି, କମାଇଁ ଅନ୍ତରଜ, ନାଗୁଣୀ
ବୋଇଲେ ପୁଣ, କନ୍ୟକା ଶୁଣ ଯେ ॥ ଅପ୍ରାଧୀ ଯେବଣ ଜନ ନାହିଁ
ଦୟା ଧର୍ମ ନା'ନ, ଈଶ୍ବରେ ଦୋଷୀ ହୁଅନ୍ତି, ନାସ୍ତିକ ଜାଣ ଯେ ।
ତାଙ୍କୁ ବଳଗିଣ ଏହି, ଦଂଶିଣ ଏମାନେ ଖାଇ, ଏଥିକୁ ସେହୁଅଛନ୍ତି
କାହିଁ ତ ଯାନ୍ତି ଯେ । ସାଧବବୋହୂ ତା ଶୁଣି, ବୋଲେ ତୁମ୍ଭେ
ଠାକୁରାଣୀ ଅପ୍ରାଧ କ୍ଷମା ନ କଲେ କେ ଥିବ ଭଲେ ଯେ । ହର୍ତ୍ତା
କର୍ତ୍ତା ତୁମ୍ଭେ ହୋଇ, କ୍ଷମା ନକର କମାଇଁ, ନାଗୁଣୀ ବୋଇଲେ
ଶୁଣ, କନ୍ୟା ଉଆଣ ଯେ । ନାଗଲ ଚଉଠ ଓଷା ମାସର ଅଛୁ
ଭରସା, ତାହାକୁ ଯେହୁ କରଇ ଆଜ୍ଞା କହଇ ଯେ । ଚତୁର୍ଦ୍ଦଶୀ
ସୋମବାର ନାଗଲ ଚଉଠି ଯାର, ଶିବ ପୂଜଇ ଦଣ୍ଡ ନପାଇ ଯେ ॥
ବୋଇଲା ସାଧବବୋହୂ ନାଗଲ ଚଉଠି ଯେହୁ, ତାହାର ବିଧାନ
କସ ଦେବତା କସ ଯେ ॥ କେଉଁ ମନ୍ତ୍ରରେ ପୂଜିବ କ ଫଳ ତହିଁ
ପାଇବ, କହ ସେ ବୁଝାଇ ମୋତେ ସଂସାର ହିତେ ଯେ । ବୋଲନ୍ତି
ନାଗ ନାଗୁଣୀ କନ୍ୟକା ଶୁଣ ଦୁଲଣୀ, କାର୍ତ୍ତିକ ଶୁକ୍ଳପକ୍ଷେ ଚତୁର୍ଥୀ
ପକ୍ଷେ ଯେ ॥ ନାଗଲଚତୁର୍ଥୀ ପୁଣ ବୋଲିକରି ଏହିନାମ, ବ୍ରହ୍ମ ଯେ
ସକାଳୁ ସ୍ନାନ କରି ବହନ ଯେ । ତା ନିତ୍ୟ କର୍ମ ସାରିବ, ପୂଜା
ବିଧି ହୁଆଇବ ବେଳ ବଣଘଡ଼ି ଠାଇଁ ସ୍ଥାନକୁ ଯାଇ ଯେ । ସୁବର୍ଣ୍ଣ
ତୈଳ ଅଏଁଳା, ସାଧବୀ ଯେ ଗନ୍ଧଫୁଲ, ସେନ ଅଙ୍ଗ ପଖାଳିବ
ଘରକୁ ଯିବ ଯେ । ପାଠ ଦା ପଠନ ହେଉ, ଅମ୍ଳାନ ବସନସେହୁ
ପିନ୍ଧିଣ ବେଳବ କାନ, ସିନ୍ଦୂର ବୋଳ ଯେ । ନାସ୍ତିମାନେ ଅଳ-
ଙ୍କାର, ଆଭରଣ ଯେ ଯାହାର ପିନ୍ଧି ଶିବ ଦରଶନ ଯିବେ ବହନ
ଯେ । ତହୁଁ ଆସି ତତକାଳେ, ବସିବେ ତହିଁର ମୂଳେ ବା...

ଅଙ୍ଗୁଳି ଟେକିଣ ଯୋଖିଥିବ ଯେ । ତହିଁରେ ଜଳ ପୂରାଇ ସୁଗନ୍ଧ ଫୁଲ ପକାଇ, ତାକୁ ଯେ ପଞ୍ଚ ଅଙ୍ଗୁଳି ଘୃତ ମଣ୍ଡଳ ଯେ ॥ କରି ଯେ ଚନ୍ଦନ ପାଣି, ପିଠଉ କୁସୁମବୁଣି ଝୁଣ୍ଟି ଆଉ ପିନ ଦେବ ଧୂପ ଜାଳିବ ଯେ । ତମ୍ବା ଚରୁ ସ୍ୱର୍ଣ୍ଣ ଚଢ଼, ସ୍ୱର୍ଣ୍ଣ ବଟେ ପୋତ ସଞ୍ଚି ଚନ୍ଦ୍ରାତପ ଉପରକୁ ଟାଣିବ ତାକୁ ଯେ । ଦୁବ ଘସ ଫୁଲ ମାଳ, ଝୁଣ୍ଟିବ ପାଟ ଦୁକୂଳ, ସୁବର୍ଣ୍ଣ ଶୋଭା ଜାଣ କରିବ ପୂର୍ଣ୍ଣ ଯେ ମଣ୍ଡଳ ଉପରେ ନେଇ, ନଗ୍ନ ବାସ ପକାଇ ସିଞ୍ଚିବ ଗନ୍ଧ କୁସୁମ ଜଳ ସୁରମ ଯେ ହୁଙ୍କରୁ ଖଣ୍ଡିଏ ଆଣି ଝିଟୋଖା କରଣ ପୃଷ୍ଠି, ପାଟ ତା'ପରେ ବେଢ଼ାଇ ଥୋଇବ ନେଇ ଯେ ତମ୍ବା ରୁପା ସୁନା ଦେବ, ଯାହାକୁ ଯାହା ମିଳିବ, ଗଢ଼ାଇ ନାଗ ନାଗୁଣୀ ଶୋଭିତ ଫଣା ଯେ । ପଞ୍ଚ ମୃତ ଜଳଦେଇ ତାହାଙ୍କୁ ସ୍ନାନକରାଇ, ବସାଇବ ତାଙ୍କୁ ପାଶ ବେଢ଼ାଇ ବାସ ଯେ ଫଣାମାନ ବଣ୍ଟିଥିବ ନାନା ଫୁଲ ଫଳ ଦେବ, ସିନ୍ଦୁର କଜ୍ଜଳ ଦେଇ ବେଶ କରାଇ ଯେ ଦେବ ବେଲପତ୍ର ତୁଳ, ମନାସିଥିବ ଦୁକୂଳ ପୁଣି ଦେବ ଅଁଳା ଡାଳକରି ମଞ୍ଜୁଳ ଯେ ଥିଲେ ଦେବ ଅଳଙ୍କାର କର୍ପୂର ଗନ୍ଧ ପଦର ନାନା ଉତ୍ସବ କରିବ, ପୂଜା ବଢ଼ିବ ଯେ ଗଞ୍ଜି ପିଠା ଖଜା ସର, ଛେନା ଡାକୁଅ ସାକର, ଗଜା ମୁଆଁ ପଖା ବଡ଼ ଉଖୁଡ଼ା ଥୋଇ ଯେ । ନୂତନ ଚୂଡ଼ା କଦଳୀ, ପାଚିଲା ଫଳ ଯେ ମିଳ ନଡ଼ିଆ ପଇଡ଼ଗୋଳ ବାଡ଼ିବ ଗୁଡ଼ ହେ । ନଡ଼ିଆ ଅଦା ଲବଙ୍ଗ, ମରୀଚ କ୍ଷୀର ସଂଯୋଗ ଛେନା ମିଶାଇ କଦଳୀ ପିଠଉ ଗୋଳ ଯେ । ପଣ୍ଡୁ ପଣ୍ଡୁକିଏ ହୋଇ, ନାଗୁଣୀଙ୍କ ଆଗେ ଥୋଇ ତହିଁର ସନ୍ତୋଷ ପୂର୍ଣ୍ଣ ହୃଦୟ ଜାଣ ଯେ ଅଖଣ୍ଡ ବଞ୍ଚିଷ ପତ୍ରରେ, ଥୋଇବ ନେଇ ପାଖରେ ପିଠଉ ନାଗନାଗୁଣୀ, ଥୋଇବ ପୁଣି ଯେ ନାନାବାଦ୍ୟ ବଜାଇବ ସାତବର୍ଣ୍ଣ ଫୁଲ ଦେବ, ସାତଯେ ଦୁବା ଅକ୍ଷତ ବଦାମ ଘସ ଯେ । ଧୂପ ଦୀପ ଯେ ଆଳତି ଚନ୍ଦନ କୁସୁମ ଜାତି, ଏମାନ ସବୁ ଥୋଇବ ଦ୍ୱିଜ

ବହିବ ଯେ ଆସନ ଭୂତ ସିଦ୍ଧିରେ, ପୂଜା ନାନା ଉପଚାରେ
ଯେବଣ ମନ୍ତ୍ରକୁ ପୂଜା ହୋଇବ ସଜା ଯେ । ନାଗ ନାଗୁଣୀ
ପଟ୍ଟୋଳା, ଅନନ୍ତାଦ୍ୟ ଅଷ୍ଟକୋଳା ନୈବେଦ୍ୟ ସ୍ୱାହା ବୋଲିଣ, ପାଣି
ଧରିଣ ଯେ ॥ ଏମନ୍ତ ଛଡ଼ାଇଦେବ ନୈବେଦ୍ୟକୁ ସମର୍ପିବ ଦେଇ
ଥିବେ ହୁଳହୁଳି ଯେ ବ୍ରତ ପାଳି ଯେ । ଦୁବ୍ବା ଚନ୍ଦନ ଅକ୍ଷତ କୁସୁମ
ବଦରି ପତ୍ର, ଦ୍ୱିଜ ଯୋଗ୍ୟ ବେଢ଼ ଶିବେ ପ୍ରଭୁଙ୍କୁ ଯେ । ଆଳତିରେ
ବନ୍ଧାଇବ କର୍ପୂର ତାମ୍ବୁଳ ଦେବ, ଶନ୍ତ ନଇବେଦ୍ୟ ଦେଇ ପ୍ରଣମ୍ୟ
ହୋଇ ଯେ ବ୍ରତମାନେ ଏକ ଚିତ୍ତେ, ଶୁଣିବେ ଏ କଥା ଗୀତେ,
ଘଟ କ୍ଷୀର ସର ଦେବେ ସୂତ୍ର ପଢ଼ିବେ ଯେ । ସାତଗୋଟି ଘଟ
କ୍ଷୀର, ସାତଗୋଟି ଘଟ ମାଖ 'ଥୁ କ୍ଷୀର ଜଳଦ୍ଧିବେ ବ୍ରତ ଏ ଗାତେ
ଯେ । ହୁଳହୁଳି ନାଦ ଦେବେ, ନାନା ଜପ୍ରବ କରିବେ ଦୁବ୍ବା
ଅକ୍ଷତକୁ ଆଣି ଯୋଗଣେ ଦେବ ପୁଣି ଯେ ପାଦୁକା ପ୍ରସାଦ ପାଇ ବକ୍ଷ
ପଟରେ ଲଗାଇ ନମସ୍କାର ତାଙ୍କୁ ହେବେ, ସୂତ୍ର ପଢ଼ିବେ ଯେ
ବୋଲିବେ ହେ ନାଗରାଜ, ଅନନ୍ତ ବିଦଶତଜ ବାସୁକୀ ହେ ନମସ୍ତୁତେ
ଉଦ୍ଧାର ମୋତେ ଯେ । ଆଗେ ପୂର୍ଣ୍ଣକୁମ୍ଭଥିବ ତର୍ପି ନଡ଼ିଆ ଅର୍ପିବ
ଘ୍ରମ୍ଭରେ ଖଞ୍ଜିବ ତାହା ମନାସି ଯାହା ଯେ ବ୍ରାହ୍ମଣ ଦକ୍ଷିଣା ଦେଇ
ତାଠାରୁ କଲ୍ୟାଣ ପାଇଁ ତାଙ୍କୁ ପୂଜା ବିଧି ଦେବ, ମେଲଣି ଦେବ
ଯେ ବ୍ରତର ସାମଗ୍ରୀମାନ ଖାଇବ ଯେ ଯାହା ମନ, ବେଳକମାନ
ସାରିବ ଯେ ଥିବ ଯେ ॥ ଏଣୁକରି ଓଷା ପୁଣି କଣ୍ଠଲ ଛୋଟେ ଯେ
ପୁଣି, ମନାସିଲେ ପୁତ୍ର ପାଇ ଆରୋଗ୍ୟ ହୋଇ ଯେ । ଚକ୍ଷୁରେ
ରୋଗ ଗୁହିଁଲ ସର୍ପବାଧା ନଲଗଇ, ପ୍ରଦତ୍ତ କାଣୀ ଦରିଦ୍ରନାଶ ଯେ ।
ଯେ ଏହି ପୂଜା କରଇ ପାଦୁକା ପ୍ରସାଦ ପାଇ, ମନାସିଲି କଥା ତାର
ହୁଏ ସଫଳ ଯେ । କୁ ପୁଣି ଏ ଓଷା ନେଇ, ମାନବେ ପୂଜା କରଇ
ମନାସି ପାଇବ ଫଳ, ହେବ ମଙ୍ଗଳ ଯେ କୁ ପୁଣି ଏ ଓଷା କର
ସବ୍ରଯିବ ଦୁଃଖ ତୋର, ସର୍ପବାଧା ନଲଗିବ ଭଲ ହୋଇବ ଯେ ॥

ସାଧବବୋହୂ ତା ଶୁଣି ବୋଇଲା ଶାଶୁଙ୍କୁ ପୁଣି, ତାଙ୍କୁ ଓଷାକରାଇବ
ଘରକୁ ଯିବ ଯେ । ଉହ୍ଲା ପାଞ୍ଚ କଉଡ଼ ଲୁଚେଇ ହୋଇଲ ସନ୍ତୋଷ,
ଘଟକୁ ଲୁଣ୍ଠବାଇ ପୁଣି ବେଇ ମେଲାଣି ଯେ । ନାଗୁଣୀ ଏମନ୍ତ ଶୁଣି
ଦହସ୍ରେକ ଘର ଆଣି, ଦେହସାର ଅଳଙ୍କାର ପାଟ ସିନ୍ଦୂର ଯେ
ଯେ ବଧୂ ପଦାର୍ଥ ଦେଲ ଧୂପକୁ ଡାକ ବଢ଼ାଇ, ବୋଲୁଛି ଝିଅକୁ ନଅ
ଘୁଙ୍ଗୁଟ ଦିଅ ଯେ ଶୁଣିଣ ସେ ସାତଭାଇ, ସକଳ ସାମଗ୍ରୀ ନେଇ
ଝିଅକୁ ପାଲିଙ୍କି ପରେ ବସାଇ ଖଟେ ଯେ । ମିଳିଲେ ସାଧବପୁରେ
ସାଧବାଣୀ ଆନନ୍ଦିତ, ଉଚିକର ତାଙ୍କ ଘେନେ ସମ୍ମାନନାରେ ଯେ
ଉଷି ଦିନାକେତେ ପୁଣି ତାହାଙ୍କୁ ଜଲେ ମେଲାଣି, ସେ ପୁଣି ହରଷ
ହୋଇଲେ ପୁତ୍ରକୁ ଗଲେ ଯେ । ଏମନ୍ତେ ହେ କେତେ ପୁଣ, ଗଲା
ବରଷକ ଜାଣ ନାଗୁଣୀ ବୋଲେ ଝିଅକୁ ଦେଖୋଇବାକୁ ହେ ।
ଶୁଣି ଭାଇମାନେ ଗଲେ ସକଳ ସାମଗ୍ରୀ ନେଲେ ଝିଅକୁ ସେ ସଙ୍ଗେ-
ନିଲେ, ଭାସ ଦେଲେ ଯେ । କେତେଦିନ ଗଲା ଜାଣ ହୋଇଲା
କାର୍ତ୍ତିକ ପୁଣ, ସେ ବୋହୂ ଶାଶୁଙ୍କୁ କହୁ ଓଷା କରଇ ଯେ ।
ସାଧବାଣୀ ବୋହୂ ସେନ, ଓଷା କଲା ସେଣ୍ଟ ମାନ ସମସ୍ତେ ଚନ୍ଦ୍ର
ଦେଖିଲେ ଓଷା କରିଲେ ଯେ । ସାରୁ ମାଗଲ ତଡ଼ିଠି କଲେ
ତଳଣ୍ଟା ତଳିଟି ଉଧ୍ୱମଣେ ଓଷା ସାରି ଚା' ଗ୍ରାସ କରି ଯେ । ଆର
ଦିନ ପ୍ରାତଃକାଳେ, ଦୁବ୍‌କା ପୁଲଡାଳ ଜଳେ ଉଞ୍ଚାଇ ସାହାନ କରି
ଘରକୁ ଫେରି ଯେ । ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଲେ ଯେ ବଧୂ ପାଳନ
କଲେ, ସମସ୍ତେ ଏ ଓଷ ପୁଣ କଲେକ ଜାଣ ଯେ । ମନାସିଲା
ଫଳମାନ ପାଇଲେ ସେ ଯାହା ମନ, ଢାଳନକ ନାଗୁଣୀପୁରେ ବୁଢ଼ା
ବସ୍ତିରେ ଯେ । ମନାସି ମାନସିକ ହୋଇ ଆମ୍ଭର ଝିଅ ବୋଲଇ
କେତେ ଦ୍ରବ୍ୟ ବୋଳିଦେଲ, ଉଲ୍ଲାସେ ଗଲା ଯେ । ଏମନ୍ତ ବୋଲି
ସେ ଯାଇ, ସାଧବ ଘରେ ଲୁଚାଇ ପାଞ୍ଚ ପଣ୍ଟୁଅରେ ଥିବ ଆଜ
ଦଂଶିବ ଯେ । ମରୁ ଏ ସାଧବ ବୋହୂ ଏ କଥା କ ଅବା ହତ୍ତୁ,

ଏମନ୍ତ ବଚନର ଶବ୍ଦେ ଉଠେ ଗୃହରେ ଯେ ।। ଏମନ୍ତ ସେ ସାଧବାଣୀ ବୋହୂ ସଙ୍ଗେ କଳି ଶୁଣି, କରଣ ବୋଇଲା ରୁଷେ ତୋ ଘର ମଲେ ଯେ । ଆମେ ଡାଆଣୀ ନଲକ୍ଷଣୀ, ଅଳଙ୍କାର ଥିଲୁ ଆଣି ପାଦୁଡ଼ ନୂପୁର ହେଲେ ଦେଲେ କି ଭଲେ ଯେ ।। ସାନବୋହୂ ବୋଲେ ଭଲେ, ନ ବଣଇ ଯେତେ ଦେଲେ ସାତ ଘର ବସ୍ତ୍ରସବେ କେତେ ସେ ବେଦବେଯେ ।। ନାଗୁଣୀ ମାତା ମୋହର, ପିତା ରଜା ନାଗଙ୍କର ଅଜା ଅଜଗର ବୁଢ଼ା ଦେବେ, ଯା ଲୋଡ଼ା ଯେ ।। ଏ ମୋ ସବୁ ଶୁଦ୍ଧେ ଥିବେ, କାଲି ଯେ ନୂପୁର ଦେ ବ, ବୁଢ଼ା ଯେ ଏହା ଶୁଣିଲା ଲେଉଟିଗଲା ଯେ ।। ଶାଶୂବୋହୂଙ୍କୁ ଡକାଇ, ପୁତ୍ର ନାଗଙ୍କୁ ବସାଇ ମଣାଇଁ ସବୁ କହିଲା ମନେ ଯା ଥିଲା ଯେ ।। ନୂପୁର ପାଦୁଡ଼ ପୁଣ, ଗଢ଼ାଇଣ ବେଗେ ଆଣ, ଦେଇ ଆସନ୍ତୁ ସଙ୍ଗୋଳ, ତା'ଘରେ କାଲି ଯେ ।। ଧର୍ମରେ ଆଗ୍ରହ ଦୃଷ୍ଟି, ତାହାକୁ ସଙ୍ଗୋଳ ଯାଅ, କାଲି ତା' ଘରକୁ ଗଲା କଳି ଶୁଣିଲା ଯେ ।। ଶାଶୂ ବୋହୂଙ୍କର କଳି ନେବେଲ ନୂପୁର ବୋଲି, ଦୃଷ୍ଟି ଶୁଣି ଅଶ୍ରୁ ଯେତେ, ଚୈକାଳ କେତେ ଯେ ।। ତା' ଶୁଣି ରକତ ହେଲା, କାର୍ତ୍ତିକ ଅଇ ନ ଗଲା, କହିଲି ଭୂମିର ଆଗେ ସଙ୍ଗୋଳ ବେଗେ ଯେ ।। ସବୁ ଅଳଙ୍କାର କଲି, ନୂପୁର କର୍ମା ନ ଭଲ ବୋହୂ ନାଗ ପୁଅ ଶୁଣି ଆନନ୍ଦ ପୂର୍ଣ୍ଣି ଯେ ।। ନାଗ ନାଗୁଣୀ ବ୍ୟବସ୍ଥା ନାଗଲ ତଉଠି କଥା ଶୁଣି ଏ ଓଷା କରିବେ, ଫଳ ପାଇବେ ଯେ ।। ମର୍ତ୍ତ୍ୟପୁରେ ଓଷା ପୁଣ, ପ୍ରତ୍ୟକ୍ଷ ବୋଲିଣ ଜାଣ ରଷିମାନଙ୍କ ବଚନ, ଦେଲା ପ୍ରସର ହେ ।। ଗୀର ମୁକବର ବାଣୀ ରଘୁନାଥ ଦାସ ଭଣି ଶତେକ ତେପନ ପଦ, ଦୁଃଖ ସମ୍ପଦ ହେ ।। ସମ୍ପୂର୍ଣ୍ଣ ହୋଇଲା ପୁଣ, ନାଗୁଣୀଙ୍କ ଆଜ୍ଞା ଜାଣ ଏ ଓଷା ଯେହୁ ପାଳଇ, ଦୁଃଖ ନ ପାଇ ଯେ ।।

—ସ-ମା-ପ୍ତ—

ମୁଦ୍ରଣ : ବିଶ୍ୱବିଦ୍ୟା ପ୍ରେସ, ଅଲିଶାବଜାର, କଟକ-୨

# ବିଜ୍ଞାପନ

ଶ୍ରୀମଦ୍ ଭାଗବତ ସ୍ୱୟଂ ଭଗବାନଙ୍କ ମୁଖ ନିସୃତ ବାଣୀହେତୁ ଏହା ଅଷ୍ଟାଦଶ ପୁରାଣ ମଧ୍ୟରେ ଶ୍ରେଷ୍ଠ ଗ୍ରନ୍ଥରୂପେ ପରିଗଣିତ । ଏଣୁ ଏହି ଗ୍ରନ୍ଥ ଅନେକ ଘରେ ଏବଂ ଦେବାଦେବୀ ମନ୍ଦିରମାନଙ୍କରେ ପୂଜା ହେଉଅଛି ତଥା ପାଠ ମଧ୍ୟ ହେଉଅଛି । କିନ୍ତୁ ଏହି ଭାଗବତ ୧୨ ଖଣ୍ଡ ବଡ଼ ହେତୁ ତାହାକୁ ସାର ବା ତା'ର ମାହାତ୍ମ୍ୟ ସମ୍ପୂର୍ଣ୍ଣ ଜାଣିବା ବହୁତ କଷ୍ଟ ସାଧ୍ୟ । ଏଣୁ ଲୋକ ଚଳଣିକୁ ଜାଣିବା ନିମିତ୍ତ ମହର୍ଷି ବ୍ୟାସଦେବଙ୍କ ପ୍ରଣୀତ ସଂସ୍କୃତ ଶ୍ଳୋକର ଅନୁବାଦ ସହ 'ଭାଗବତ ମାହାତ୍ମ୍ୟ' ପୁସ୍ତକ ଖଣ୍ଡି ପାଠକମାନେ ଉକ୍ତ ତେରଖଣ୍ଡ ଭାଗବତ ବହିର ମାହାତ୍ମ୍ୟ ଅଳ୍ପରେ ଜାଣିପାରିବେ । ଏଥି ବ୍ୟତୀତ ଉକ୍ତ ଭାଗବତ ମାହାତ୍ମ୍ୟ ବହିଟି ପାଠକଲେ ସେଥିରୁ ଜାଣିବେ— ଭକ୍ତିଦେବୀଙ୍କ ବୃତ୍ତାନ୍ତ, ଭଗବାନଙ୍କ ମୁଖରୁ ବ୍ରହ୍ମାଙ୍କ ପ୍ରତି କଥିତ ଶ୍ରୀମଦ୍ ଭାଗବତ ମାହାତ୍ମ୍ୟ, ଦେବର୍ଷି ନାରଦଙ୍କ ଉକ୍ତି ସହ ଭେଟ, ଭକ୍ତିର କଷ୍ଟ ନିବୃତ୍ତିପାଇଁ ନାରଦଙ୍କ ଉଦ୍ୟୋଗ, ଗୋକର୍ଣ୍ଣ ଉପାଖ୍ୟାନ, ଧୁନ୍ଧୁକାରୀ ସଦ୍‌ଗତି ଶରୀରପ୍ରାପ୍ତ ଓ ଭକ୍ତିର ଉଦ୍ଧାର ତଥା ଶ୍ରୀମଦ ଭାଗବତ ସପ୍ତାହ ପାଠର ବିଧି ।

ଏତଦ୍‌ବ୍ୟତୀତ ବେଦ, ବେଦାନ୍ତ, ଉପନିଷଦ, ଗୀତା, ଜାଗ ଓ ବ୍ରତ, ସମସ୍ତ ପ୍ରକାର ପୁରାଣ, ଗଳ୍ପ, ନାଟକ, ପଞ୍ଜିକା, କ୍ୟାଲେଣ୍ଡର ସହ କୋମଳମତି ଶିଶୁମାନଙ୍କ ପଢ଼ିବାପାଇଁ ବହୁ ପ୍ରକାରର ଅକ୍ଷର ଶିକ୍ଷାଦାୟକ ବହି ନିମ୍ନ ଠିକଣାରେ ଯୋଗାଯୋଗ କଲେ ସୁବିଧା ଦରରେ ପାଇପାରିବେ ।

ଠିକଣା :

ମେସର୍ସ—ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ—ଶ୍ରୀ ଗଦାଧର ସାହୁ

ଅଲିଶାବଜାର, କଟକ-୨

ଫୋନ୍ ନଂ-୨୪୭୬